# ଯଦୁମଣିଙ୍କ
# ମଉଜିଆ କାହାଣୀ

ଶ୍ରୀ ଶିବରାମ ମହାପାତ୍ର

ଲୋକସାହିତ୍ୟ ପ୍ରକାଶନ
ବାଲୁବଜାର, କଟକ-୨

ପ୍ରକାଶକ: ଲୋକସାହିତ୍ୟ ପ୍ରକାଶନ, ବାଲୁବଜାର, କଟକ-୨

ମୁଦ୍ରକ: ଅପ୍ରତିମା (ଅଫସେଟ୍) ପ୍ରିଣ୍ଟସ୍
ସୂତାହାଟ, କଟକ – ୧

ପ୍ରଥମ ମୁଦ୍ରଣ : ୧୯୮୫
ପୁନର୍ମୁଦ୍ରଣ : ୧୯୯୫

ମୂଲ୍ୟ : ୬.୦୦

# ସୂଚୀ



□ □ □

# କବି ଯଦୁମଣି

ଯଦୁମଣିଙ୍କର ପୂରା ନାମ ଯଦୁମଣି ମହାପାତ୍ର। ସେ ନୟାଗଡ଼ ରାଜାଙ୍କ ସଭାରେ ପଣ୍ଡିତ ଥିଲେ। ସେ ଜଣେ ବଡ଼ କବି ଥିଲେ। ମଉଜିଆ କଥା କହିବା ଓ ଗୀତ ତିଆରି କରିବାରେ ତାଙ୍କ ଭଳି ଆଗରୁ କେହି ନ ଥିଲେ କି ତାଙ୍କ ପରେ କେହି ବାହାରି ନାହାନ୍ତି। ଆମ ରାଇଜରେ ଏପରି ବହୁ ମଉଜିଆ କଥା ଓ ଗୀତ ଯଦୁମଣିଙ୍କ ନାମରେ ଚଳିଆସୁଛି।

ସେ ଗଞ୍ଜାମ ଜିଲାର ଆଠଗଡ଼ରେ ଜନ୍ମ ହେଇଥିଲେ। ତାଙ୍କ ବାପାଙ୍କ ନାମ ମୁକୁନ୍ଦ ମହାପାତ୍ର ଓ ମାଆଙ୍କ ନାମ ଶୋଭା ଦେବୀ। ମୁକୁନ୍ଦ ମହାପାତ୍ର ଜଣେ ଭଲ ଚିତ୍ରକର ଥିଲେ। ଯଦୁମଣିଙ୍କୁ ଯେତେବେଳେ ଦଶବର୍ଷ ତାଙ୍କର ବାପା ମାଆ ଆଠଗଡ଼ ଛାଡ଼ି ନୟାଗଡ଼ ରାଇଜକୁ ଚାଲି ଆସିଥିଲେ। ନୟାଗଡ଼ ରାଜା ମୁକୁନ୍ଦ ମହାପାତ୍ରଙ୍କୁ ତାଙ୍କ ରାଇଜର ଇଟାମାଟି ଗାଁରେ ରହିବାକୁ ଅନୁମତି ଦେଲେ। ଯଦୁମଣି ଏଇ ଇଟାମାଟିରେ ବଢ଼ିଲେ। ସେଠାରେ ସଂସ୍କୃତ ପାଠ ପଢ଼ିଲେ। ତା’ ପରେ ସାଧନା କରି ଜଣେ ବଡ଼ କବି ହେଲେ। ଯଦୁମଣି ନୟାଗଡ଼ ରାଜାଙ୍କ ସଭାରେ ପଣ୍ଡିତ ଥିଲେ। ରାଜା ତାଙ୍କୁ ବହୁତ ଆଦର କରୁଥିଲେ।

ସେ ସମୟର ପୁରୀର ଗଜପତି ରାଜା, ଢେଙ୍କାନାଳ, ରଣପୁର, ଦଶପଲ୍ଲା, ବୌଦ, ଖଣ୍ଡପଡ଼ା ଆଦି ଗଡ଼ଜାତର ରାଜାମାନେ ମଧ କବି ଯଦୁମଣିଙ୍କୁ ଆଦର ସମ୍ମାନ କରୁଥିଲେ। ସେ ଆଜିକୁ ପ୍ରାୟ ୧୨୦ ବର୍ଷ ତଳେ ଗୁଣ୍ଡିଚା ତିଥିରେ ପ୍ରାଣ ତ୍ୟାଗ କରିଥିଲେ। ଯଦୁମଣି ତାଙ୍କ ମଉଜିଆ କାହାଣୀ

ଓ ଚଉପଦୀ ଗୀତ ପାଇଁ ଅମର ହୋଇ ରହିଛନ୍ତି। ଏ ଛୋଟ ବହିଟିରେ ତାଙ୍କର କେତୋଟି କାହାଣୀ ଅତି ସରଳ ଭାଷାରେ ଦିଆଯାଇଛି। ଯିଏ ପଢ଼ିବ ଆନନ୍ଦ ପାଇବ।

# ଯଦୁମଣି ଭେଣ୍ଡାହେଲେ

କବି ଯଦୁମଣିଙ୍କୁ ଆମ ଓଡ଼ିଶା ରାଇଜରେ ସମସ୍ତେ ଜାଣନ୍ତି। ମଉଜିଆ ଗୀତ ଲେଖିବାରେ ଓ କଥା କହିବାରେ ତାଙ୍କ ପରି କେହି ନଥିଲେ। ସେ କଥା କହିଲେ କାନ୍ଦିବା ଲୋକ ବି ହସିବ।

ଦିନକର କଥା। ଯଦୁମଣି ଗାଁ ମଣ୍ଡପରେ ବସି ସାଙ୍ଗ ମେଳରେ ଗପସପ ହେଉଥାନ୍ତି। ଗପ କରୁ କରୁ ରାତି ବେଶି ହୋଇଗଲା। ଖରାଦିନ, ଛୋଟ ରାତି। ସକାଳୁ ନିଦ ଭାଙ୍ଗିଲା ନାହିଁ। ଉଠିବାରେ ଡେରି ହେଲା। ତାହା ଦେଖି ତାଙ୍କ ଘରଣୀ ମଧ୍ୟ ରୋଷେଇବାସ କରିବାରେ ଡେରି କରିଦେଲେ। ସେ ମନେ ମନେ ଭାବିନେଲେ ଯଦୁମଣି ସେଦିନ ବୋଧେ ରାଜାଙ୍କ ପାଖକୁ ଯିବେ ନାହିଁ। ତେଣୁ ସେ ସବୁଦିନ ଭଳି ସକାଳୁ ଚୁଲି ଲଗାଇଲେ ନାହିଁ।

ଯଦୁମଣିଙ୍କର ଡେରିରେ ନିଦ ଭାଙ୍ଗିଲା। ଧଡ଼ପଡ଼ ହୋଇ ଉଠିଲେ। ମୁହଁଟା ଧୋଇ ପକାଇଲେ। ଡାଳଟିଏ ଧରି ଚାଲିଲେ ପୋଖରୀ କୂଳକୁ। ସେଇଠି ସକାଳର କାମ ସାରିଦେଲେ। ପୋଖରୀରେ ବୁଡ଼ଟାଏ ପକାଇ ତରତର ହୋଇ ଘରକୁ ଫେରିଲେ। ଘରେ ପାଦ ଦେଉ ଦେଉ ଘରଣୀଙ୍କୁ ଡାକ ପକାଇଲେ ଭାତ ବାଢ଼ିବାପାଇଁ। କହିଲେ– ''ଚଞ୍ଚଳ ଭାତ

ବାଢ଼, ବେଳ ହେଇଗଲା । ନଅରକୁ ଯିବାର ଅଛି ।''

ଘରଣୀ ଏହା ଶୁଣି ତାଟକାହେଲେ । କହିଲେ – ''ତୁମେ ତ ଡେରିରେ ଉଠିଲ । ମୁଁ ଭାବିଲି ତୁମର ଆଜି କୁଆଡ଼େ ଯିବାକୁ ନାହିଁ । ରାଜାଙ୍କ ଡାକରା ଥିଲା ତ ଏତେ ବେଳ ଯାଏଁ ଶୋଇଥିଲ କାହିଁକି ? ହଉ, ଆଉ ଟିକିଏ ରହିଯାଅ । ରୋଷେଇ ସରିଆସିଲାଣି । ବେଶି ଡେରି ହେବନାହିଁ ।''

ଘରଣୀଙ୍କ କଥା ଶୁଣି ଯଦୁମଣି ରାଗିଉଠିଲେ । ପାଟି କରି କହିଲେ – ''ତୁ କ'ଣ ଜାଣିନୁ ମୁଁ ସବୁଦିନେ ରାଜାଙ୍କ ପାଖକୁ ଯାଏ ବୋଲି ? ଆଜି ଡେରିକଲୁ ଯେ କ'ଣ ଭାବିଥିଲୁ ଘୋଡ଼ାଟାଏ ଚଢ଼ି ଯିବି ବୋଲି !''

ଘରଣୀ କହିଲେ – ''ଭଲ କଥା କହିଲ ତ ! ତୁମେ କ'ଣ ଘୋଡ଼ାରେ ଚଢ଼ିଲା ଭଳି ମଣିଷ ନୁହଁ କି ? କେତେ ପାଠ ପଢ଼ିଚ । କି ସୁନ୍ଦର ଗୀତ ଲେଖୁଚ । ଲୋକେ ସବୁଠି ଧନ୍ୟ ଧନ୍ୟ କରୁଚନ୍ତି । ରାଜା ଦୟା କଲେ ଘୋଡ଼ା କ'ଣ, ତୁମକୁ ତ ହାତୀ ଉପରେ ବସାଇବେ ।''

ଭାରିଯା କଥା ଶୁଣି ଯଦୁମଣିଙ୍କ ରାଗ ଥଣ୍ଡାପଡ଼ିଗଲା । କଥାଟା ତାଙ୍କର ପସନ୍ଦ ହେଲା । ଭାବିଲେ – ''ମାଇପୀ ଲୋକ ହେଲେ ବି ଭଲ କଥାଟେ କହିଲା । ସୁବିଧା ଦେଖି ରାଜାଙ୍କୁ ଘୋଡ଼ାଟାଏ ମାଗିବି ।'' ସେ ଏ କଥା ମନରେ ରଖିଲେ । ଗଣ୍ଡେ ଖାଇଦେଇ ଯଦୁମଣି ଘରୁ ବାହାରିଲେ । ଡେରି ତ ହେଇଚି, ତରତରରେ ଚାଲିଲେ । ତଥାପି ରାଜାଙ୍କ ସଭାରେ ପହଞ୍ଚିବାକୁ ଡେରି ହେଲା । ରାଜା ଯଦୁମଣିଙ୍କୁ ଦେଖି ପଚାରିଲେ – ''କ'ଣ ଯଦୁମଣି, ବୁଢ଼ାହେଇଗଲ କି – ଚାଲିବାକୁ ବଳ ପାଉନି ? ଆଜି ଏତେ ଡେରି କଲ ଯେ ?''

ଯଦୁମଣି ସତେ ଯେମିତି ରାଜାଙ୍କ ମୁହଁରୁ ଏହି ପ୍ରଶ୍ନଟିକୁ

ଚାହିଁରହିଥିଲେ। ରାଜାଙ୍କ କଥା ଶୁଣି ତୁଣ୍ଡେ ତୁଣ୍ଡେ ଗୋଟିଏ ଚଉପଦୀ ଯୋଡ଼ି ଉତ୍ତର ଦେଲେ –

ନୋହିବ ହରିଣ ନୋହିବ ଗାଈ
ଘୋଡ଼ା ନାମ ବହି ହୋଇବ ମାଈ,
ପିଇବ ତୋରାଣି ଖାଇବ କୁଣ୍ଡା,
ତେବେ ଯଦୁମଣି ହୋଇବ ଭେଣ୍ଡା।



ରାଜା କଥାଟା ଠଉରାଇ ନେଲେ। ମନେ ମନେ ଖୁସି ହେଲେ। ଘୋଡ଼ାଶାଳରୁ ବାଛି ମନମୁତାବକ ମାଈ ଘୋଡ଼ାଟିଏ ନେବାକୁ ଯଦୁମଣିଙ୍କୁ କହିଲେ। ସେହିଦିନଠାରୁ ଯଦୁମଣି ଘୋଡ଼ାରେ ଚଢ଼ି ରାଜାଙ୍କ ପାଖକୁ ଯିବା ଆସିବା କଲେ।

# ଛାମୁ ଯାହା ଦେଲେ ହରଷେ

ନୟାଗଡ଼ ରାଜାଙ୍କ ଦରବାର। ଯଦୁମଣି ସେଠାରେ ସଭାପଣ୍ଡିତ। ତାଙ୍କର ଅନେକ ମାନସନମାନ। ହେଲେ ଯାହା କହନ୍ତି – ବାସିଓଳିକି ଘରେ ଦାନା ନଥାଏ। ପ୍ରତିଦିନ ରାଜାଙ୍କ ହାତଟେକା ଯାହା ମିଳେ ସେଥିରେ ଘର ଚଳେ। ରାଜା ଯେଉଁ ଦିନ କିଛି ନ ଦେଲେ ସେଦିନ ଘର ଅଚଳ। ହେଲେ ପଣ୍ଡିତେ କେଉଁଥିକୁ ଖାତିର କରନ୍ତିନାହିଁ। ମାଗିବାକୁ ତାଙ୍କୁ ଲାଜଲାଗେ। ଘରେ କିଛି ନ ଥିଲେ ବି ବାହାରେ ସେ କଥା କେହି ଜାଣନ୍ତି ନାହିଁ। କିନ୍ତୁ ଏମିତି କେତେ ଦିନ ବା ଚଳିପାରେ ? ଘରେ ମାଇପୀ ଲୋକ। ସେ କ'ଣ କରିବେ – କାହାକୁ ମାଗିବେ ?

ଦିନେ ଯଦୁମଣି ଖାଲିହାତରେ ରାଜାଙ୍କ ପାଖରୁ ଫେରିଲେ। ଏହା ଦେଖି ତାଙ୍କ ଭାରିଯା କହିଲେ – "ହଇହେ, ତୁମେ କିମିତିକା ମଣିଷ ମ ? ରଜାଘରୁ କିଏ କେତେ ବୋହି ନେଉଚ଼ନ୍ତି – ଟଙ୍କା, ସୁନା, ଜମି, ବାଡ଼ି, ବଗିଚା। ତୁମେ ଏଡ଼େ ପଣ୍ଡିତ। ରଜା ତୁମକୁ କେତେ ଭଲ ପା'ନ୍ତି। ହେଲେ ରଜା କାହିଁ କେବେ ହାତ ଟେକି ତୁମକୁ ଖଣ୍ଡେ ଜମି ଦେଲେ ନାହିଁ ତ ? ଜମି ଖଣ୍ଡିଏ ଥିଲେ ଘରକୁ ଧାନ ମୁଗ ହେଇ ଗଣ୍ଡେ ଆସନ୍ତା। ଭାତ ଚିନ୍ତା ରହନ୍ତା ନାଇଁ। ରଜାଙ୍କର ଏଡ଼େ ବଡ଼ ରାଇଜ। ତୁମକୁ ଖଣ୍ଡେ ଜମି ଦେଲେ ତାଙ୍କର କିଛି ସରିଯିବ ନାହିଁ। ଏ କଥା ଟିକିଏ ମନରେ ହେଜ।"

ଯଦୁମଣି ଘରଣୀଙ୍କ କଥାଟି ମନରେ ରଖିଲେ। ଦିନେ ରାଜାଙ୍କୁ ନିଜର ଦୁଃଖ କହୁ କହୁ ଏଇ କଥାଟି କହିଲେ। ଗୁହାରି ଜଣାଇଲେ – "ମଣିମା, ମତେ ଖଣ୍ଡିଏ ଜମି ମିଳୁ।"

ରାଜା ଯଦୁମଣିଙ୍କ କଥା ରଖି ତାଙ୍କୁ ଖଣ୍ଡିଏ ଜମି ଦେବାକୁ କରଣଙ୍କୁ ହୁକୁମ ଦେଲେ। କରଣ ରାଜାଙ୍କ ହୁକୁମ ପାଇଲେ ସିନା, ଜମି ଦେବାର ନାଁ ଧରିଲେ ନାଇଁ। ଦିନ ଗଡ଼ିଗଲା ଚାଲିଲେ। ଯଦୁମଣିଙ୍କୁ ଜମି ଦେବାକୁ ତାଙ୍କର ମନ ନ ଥାଏ।

ଯଦୁମଣି ବି ଛାଡ଼ିଲେ ନାହିଁ। ସେ ଥରକୁଥର କରଣଙ୍କ ଦୁଆରକୁ ଗଲେ। କରଣ ଦେଖିଲେ— ଜମି ଖଣ୍ଡେ ନ ଦେଲେ ଯଦୁମଣି ଛାଡ଼ିବେ ନାହିଁ। ତେଣୁ ସେ କ'ଣ କଲେ ନା ବାଛି ବାଛି ଖଣ୍ଡିଏ ପଡ଼ିଆ ଜମି ଯଦୁମଣିଙ୍କୁ ଦେଲେ।



ଯଦୁମଣି ଜମି ପାଇ ଖୁସି ହେଲେ। ରାଜାଙ୍କଠାରୁ ପାଇଥିବା ଜମି ଖଣ୍ଡିକ ଦେଖିବାକୁ ଗଲେ। ଦେଖିଲେ ଛୋଟ ଜମି ଖଣ୍ଡିଏ, ତାହା ବି ପଥୁରିଆ। ବରଷା ଦିନ। ସବୁଆଡ଼େ ପାଣି ଭରି ରହିଚି। ହେଲେ ସେ ପାଇଥିବା ଜମି ଖଣ୍ଡିକ ଠୋ ଠୋ ଶୁଖିଲା। ସେ ଜମିରେ ଧାନ ହେବା କଥା

ଛାଡ଼, ଚାକୁଣ୍ଡା ଗଛ ମଧ୍ୟ ଜଅଁଳିବ ନାହିଁ। ଯଦୁମଣି ଜାଣିଲେ କରଣ ତାଙ୍କୁ ଠକିଦେଲେ। ସେ ମନ ଦୁଃଖରେ ଘରକୁ ଫେରିଲେ। କରଣଙ୍କୁ ପାନେ ଦେବାକୁ ଯଦୁମଣି ମନରେ ପାଞ୍ଚିଲେ। ଗୋଟିଏ ଉପାୟ ଠିକ୍ କରି ରାତିରେ ଶୋଇଲେ।

ସବୁଦିନ ଭଳି ଯଦୁମଣି ତା ଆରଦିନ ରାଜାଙ୍କ ନଅରକୁ ଗଲେ। ସଭା ଚାଲିଥାଏ। କେତେ ଲୋକ ବସିଥାନ୍ତି। ଯଦୁମଣି ରାଜାଙ୍କୁ ଜୁହାର ହୋଇସାରି ଗୋଟିଏ ଚଉପଦୀ ବୋଲିଲେ –

ଛାମୁ ଯାହା ଦେଲେ ହରଷେ
କରଣ ତା କଲେ ବରଷେ
ବାଛି ବାଛି ଦେଲେ ଏମନ୍ତ ପଡ଼ିଆ
ଶ୍ରାବଣ ମାସରେ ଭାଙ୍ଗେ ନଡ଼ିଆ।
ଏମନ୍ତ ଭୂଇଁ, ଚାକୁଣ୍ଡା ବୁଣିଲେ ଉଠଇ ନାହିଁ।

ରାଜା ଚଉପଦିଟି ଶୁଣି ହସି ହସି ଗଡ଼ିଗଲେ। ସାଙ୍ଗେ ସାଙ୍ଗେ କରଣଙ୍କୁ ଡକାଇଲେ। ଖଣ୍ଡିଏ ଭଲ ଜମି ଯଦୁମଣିଙ୍କ ନାମରେ କରିଦେଲେ।

## ଆଠଗଡ଼ ନୁହେଁ କାଠଗଡ଼

ଅନେକ ଦିନ ଆଗେ ଆମ ଏଇ ଓଡ଼ିଶାରେ କେତେଜଣ ରାଜା ଥିଲେ। ଏହି ରାଜାମାନଙ୍କ ସଭାରେ ନାନା ପାଠ ଜାଣିଥିବା ପଣ୍ଡିତମାନେ ରହୁଥିଲେ। ପଣ୍ଡିତମାନେ ଜଣେ ରାଜାଙ୍କ ସଭାରେ ରହିଲେ ବି ବେଳେ ବେଳେ ଅନ୍ୟ ରାଜାମାନଙ୍କ ପାଖକୁ ଯାଉଥିଲେ।

ଯଦୁମଣି ମଧ୍ୟ ବହୁ ରାଜାଙ୍କ ସଭାକୁ ଯାଉଥିଲେ। ସେ ସବୁଠାରେ ବହୁତ ଆଦର ସନମାନ ପାଉଥିଲେ। ତଥାପି ଟଙ୍କା

ପଇସାର ଅଭାବ ସବୁବେଳେ ଲାଗିରହୁଥିଲା । କବି ଓ ପଣ୍ଡିତମାନେ ଗରିବ ହେବା ଯେମିତି ସେମାନଙ୍କ କପାଳରେ ଲେଖାଅଛି ।

ଯଦୁମଣି ନୟାଗଡ଼ ରାଜାଙ୍କ ରାଜସଭାର ପଣ୍ଡିତ ଥାଆନ୍ତି । ମଝିରେ ମଝିରେ ଆଠଗଡ଼ର ରାଜା ତାଙ୍କୁ ଡକାନ୍ତି । ଯଦୁମଣି ତାକରା ପାଇ ଯାଇ ବୁଲିଆସନ୍ତି । ଯଦୁମଣିଙ୍କର ବୟସ ବଢ଼ିଗଲା । ଦେହରୁ ବଳ କମିଗଲା । ତେଣୁ ନୟାଗଡ଼ ଛାଡ଼ି ବାହାରକୁ ଆଉ ଯାଇପାରିଲେ ନାହିଁ ।

ବୟସ ବଢ଼ିବା ସଙ୍ଗେ ସଙ୍ଗେ ଯଦୁମଣିଙ୍କ ଅଣ୍ଟା ନଇଁଗଲା । ଦିନେ ଯଦୁମଣି ନଇଁ ନଇଁ ଯାଇ ରାଜସଭାରେ ହାଜର ହେଲେ । ତାଙ୍କର ଅବସ୍ଥା ଦେଖି ରାଜା ଦୁଃଖିତ ହେଲେ । ତଥାପି ପଚାରିଦେଲେ – 'ଯଦୁମଣି ! ଆଠଗଡ଼ଆଡ଼େ କେବେ ଯିବେ ?'

ଯଦୁମଣି ରାଜାଙ୍କ ପ୍ରଶ୍ନର ଉତ୍ତର ଦେଇ କହିଲେ – ''ମଣିମା, ମୋର କାଠଗଡ଼ ତ ଲୋଡ଼ା ହେଲାଣି – ଆଉ ଆଠଗଡ଼ କଥା କାହିଁକି ପଚାରୁଛନ୍ତି ?'' ଯଦୁମଣିଙ୍କ କଥା ଶୁଣି ରାଜା ନିଜର ଭୁଲ ବୁଝିପାରି ଚୁପ୍ ହୋଇଗଲେ । ସେ ମନେ ମନେ ଭାବିଲେ – ଯଦୁମଣି କେଡେ ବଡ଼ କଥାଟାଏ କହିଲେ । ମଣିଷ ମନକରୁଥିବା ଜାଗାକୁ ଯାଇପାରେନାହିଁ; ମାତ୍ର ସେ ମନ ନକଲେ ବି ମରିବ – କାଠଗଡ଼ ଲଦି ତାକୁ ପୋଡ଼ାଯିବ ।

## ଠାକୁରଦେଖା

କବି ଯଦୁମଣି ଥରେ ଦଶପଲ୍ଲାକୁ ବୁଲିଯାଇଥିଲେ । ଦଶପଲ୍ଲାର ରାଜା ଥାନ୍ତି ନରେନ୍ଦ୍ର ଦେବ । ଯଦୁମଣି ଏତେ

ବଡ଼ ପଣ୍ଡିତ, କବି। ତଥାପି ସେ ଯେତିକି ଆଦର ଓ ସନମାନ ପାଇବା କଥା ଦଶପଲ୍ଲା ରାଜା ତାହା କଲେନାହିଁ। ରାଜାଙ୍କର ଏପରି ଢଙ୍ଗଢ଼ାଙ୍ଗରେ ଯଦୁମଣିଙ୍କ ମନ ଖରାପ ହେଲା।

ଏହି ସମୟରେ ଦଶପଲ୍ଲାରେ ଗୋଟିଏ ନୂଆ ଦେଉଳ ତୋଳାହେଇଥାଏ। ଦେଉଳଟି ଜଗନ୍ନାଥଙ୍କ ପାଇଁ। ଠାକୁରେ ନୂଆ ଦେଉଳରେ ବିଜେହେଲେ। ଦିନେ ରାଜା ଠାକୁର ଦର୍ଶନ ପାଇଁ ମନ୍ଦିରକୁ ଯାଇଥାନ୍ତି। ତାଙ୍କ ସାଥିରେ ଥାନ୍ତି ଯଦୁମଣି। ରାଜା ଠାକୁରଙ୍କୁ ଜୁହାର ହେଲେ। ରାଜାଙ୍କ ପାଖରେ ଥାଇ ଯଦୁମଣି ମଧ୍ୟ ଠାକୁରଙ୍କୁ ମୁଣ୍ଡିଆମାରିଲେ। ତା ପରେ ସଭିଏଁ ଶୁଣିଲା ଭଳି ଗୋଟିଏ ଗୀତ ଗାଇଲେ –



କୁଞ୍ଜବନେ ଜଗନ୍ନାଥ ନ ହେବ ଗୋସାଇଁ
ରଥ ବୋଲି ଭଣ୍ଡି ନେବେ ଶଗଡ଼େ ବସାଇ।

ଭୋଗ ବୋଲି ଖଞ୍ଜିଦେବେ କଡ଼ିକିଆ ମୁଆଁ
ଧୂପ ବୋଲି ମାଡ଼ିଦେବେ ନିଆଁ ଖୁଣ୍ଟା ଧୂଆଁ ।

କୁଞ୍ଜବନ ଦଶପଲ୍ଲା ରାଇଜର ରାଜଧାନୀର ନାମ । ଏ ଗୀତର ଅର୍ଥ ହେଲା– ହେ ଠାକୁରେ, ଏ କୁଞ୍ଜବନ ଭଲ ଜାଗା ନୁହେଁ । ଏଠି ତୁମକୁ ରଥରେ ନବସାଇ ଶଗଡ଼ରେ ବସାଇବେ । ତୁମକୁ କେତେ ଭଲ ଭଲ ଜିନିଷ ପୂଜା କରାଯାଏ । ହେଲେ ଏଠି କଡ଼ିକିଆ ମୁଆଁ ଭୋଗ ଲଗେଇ ଦେବେ । ଧୂପ ବୋଲି ଧୂଆଁ ବାହାରୁଥିବା ଦରପୋଡ଼ା କାଠ ଆଣି ଥୋଇବେ । ଏଠାର ରାଜା ଉଚିତ ସନମାନ କରିବା ଜାଣନ୍ତି ନାହିଁ ।

ରାଜା ଗୀତର ମରମ ବୁଝିଗଲେ । ତାଙ୍କୁ ଦେଖେଇ ଯଦୁମଣି ଯେ ଗୀତଟି ଗାଇଚ଼ନ୍ତି ସେ ଏହା ଜାଣିପାରିଲେ । ହେଲେ ଗୁଣିରାଜା ଏଥିରେ ରାଗିଲେ ନାହିଁ । କବି ଯଦୁମଣିଙ୍କୁ ସମାଦର କରିନଥିବାରୁ ନିଜର ଭୁଲ ବୁଝିଲେ । ତାଙ୍କୁ ସନମାନ ଦେଇ ରାଇଜରେ ରଖାଇଲେ ।

## ଯଦୁମଣିଙ୍କ ଚଉପଦୀ ଭେଟି

ଯଦୁମଣି ଦଶପଲ୍ଲା ରାଇଜରେ ରହିବା ସମୟର କଥା । ସେ ରାଜାଙ୍କ ଅତିଥି ହୋଇ ରହିଥାନ୍ତି । ଯଦୁମଣିଙ୍କ ମଉଜିଆ କଥା ଓ ଗୀତ ଶୁଣିଲେ କିଏ ଅବା ଖୁସି ନ ହେବ ? ବିଶେଷରେ ଯଦୁମଣିଙ୍କ ଚଉପଦୀର ବହୁତ ଆଦର ଥାଏ । ରାଜାଙ୍କର ଦିନେ ମନହେଲା ନୂଆ ଚଉପଦୀ ଶୁଣିବା ପାଇଁ । ରାଜା ଯଦୁମଣିଙ୍କୁ କହିଲେ– "ଯଦୁମଣି ! ଆମ ପାଇଁ କିଛି ଚଉପଦୀ କରି ଆଣ ।"

ଯଦୁମଣି ରାଜାଙ୍କ କଥାରେ ହଁ ଭରି ବସାକୁ ଫେରିଲେ ।

ଗୋଟିଏ ଲୋକକୁ ପଠାଇ କିଛି ଶାଳପତର ତୋଳାଇ ଆଣିଲେ। ତାକୁ ଲଗାଇ ସେଇ ପତରରେ ଗୁଡ଼ିଏ ଠୋଲା ତିଆରି କରାଇଲେ। ତା' ଆରଦିନ ସକାଳୁ ସେ ଠୋଲାଗୁଡ଼ିକ ଗୋଟିଏ ଝୁଡ଼ିରେ ପୂରାଇ ଝୁଡ଼ିର ମୁହଁକୁ ଖଣ୍ଡେ କନାରେ ଘୋଡ଼ାଇଦେଲେ। ଗୋଟିଏ ଲୋକ ତାହା ମୁଣ୍ଡରେ ଧରି ଯଦୁମଣିଙ୍କ ପଛେ ପଛେ ରାଜସଭାକୁ ଚାଲିଲା।

ଯଦୁମଣି ଦରବାରରେ ପହଞ୍ଚିଲେ। ଲୋକଟି ମୁଣ୍ଡରୁ ଝୁଡ଼ିଟି ଉଠାଇନେଇ ରାଜା ଦେଖିପାରିବା ଭଳି ଏକ ଜାଗାରେ ରଖିଲେ। ଯଦୁମଣି ବୋଝଟିଏ ନେଇ ଆସିବା ରାଜା ଦେଖିଲେ। ହେଲେ କିଛି ବୁଝିପାରିଲେ ନାହିଁ। ପଚାରିଲେ – ''ଏ କ'ଣ କି ?''



ଯଦୁମଣି ବୋଝଟିକୁ ଦେଖାଇ ହାତ ଯୋଡ଼ି ଜଣାଇଲେ – ''ମଣିମା ! କିଛି ଚଉପଦୀ ଭେଟି ଦେବାକୁ ଆଣିଚି। ଆପଣ

କହିଥିଲେ କେତୋଟି ଚଉପଦୀ କରି ଆଣିବାକୁ। ମୁଁ ଛାମୁଙ୍କ ହୁକୁମ ମାନି ଚଉପଦୀ ଆଣିଚି। ମଣିମା ଘେନା କରନ୍ତୁ।'' ଏହା କହି ସେ ଝୁଡ଼ି ମୁହଁରୁ କନାଟି ଆଡ଼େଇଦେଲେ।

ଚାରି ଧାଡ଼ିରେ ଲେଖାହେବା ଗୀତକୁ ଚଉପଦୀ କୁହାଯାଏ। ସେମିତି ଚାରିଟି ପତରକୁ ଗୁନ୍ଥି ତିଆରିହେବା ପତର ଠୋଲାକୁ ମଧ୍ୟ ଚଉପଦୀ କୁହାଯାଏ। ଯଦୁମଣିଙ୍କ ଚଉପଦୀ ବୋଝ ଦେଖି ରାଜା ହସି ହସି ବେଦମ୍ ହେଲେ। ସଭାର ସବୁ ଲୋକମାନେ ମଧ୍ୟ ହସି ହସି ଗଡ଼ିଗଲେ। ଯଦୁମଣିଙ୍କ ବୁଦ୍ଧିର ସଭିଏଁ ପ୍ରଶଂସା କଲେ। ରାଜା ଯଦୁମଣିଙ୍କୁ କିଛି ଟଙ୍କା ପୁରସ୍କାର ଦେଲେ।

# ଗୁଣୀ କେବଳ ଗୁଣ ବୁଝିପାରେ

ଥରେ ରଣପୁରର ରାଜା ଯଦୁମଣିଙ୍କୁ ତାଙ୍କ ରାଇଜକୁ ଡକାଇପଠାଇଲେ। ଯଦୁମଣି ଖବର ପାଇବା ସାଥି ସାଥି ରଣପୁର ଯିବାକୁ ତିଆରହୋଇଗଲେ। ଆମ ଓଡ଼ିଶାରେ କଥା ଅଛି ଯେ– ରାଜା, ଦେବତା ଓ ଗୁରୁଙ୍କ ପାଖକୁ ଖାଲି ହାତରେ ଯିବ ନାଇଁ। ଯଦୁମଣି ବଡ଼ ଅଡୁଆରେ ପଡ଼ିଲେ। ରାଜାଙ୍କୁ କ'ଣ ଭେଟି ଦେବେ? ଘରେ ତ ଏମିତି କିଛି ନାଇଁ। ଦିଅଁ ଖଟୁଲିରେ ଗୋଟିଏ ଶାଳଗ୍ରାମ ଛଡ଼ା ଘର ଖାଲି କହିଲେ ଚଳେ। ଯଦୁମଣି ଭାବିଲେ– ଶାଳଗ୍ରାମଟି ନେଇ ରାଜାଙ୍କୁ ଉପହାର ଦେବେ। ସେ ଅତି ଯତ୍ନରେ ଶାଳଗ୍ରାମଟିକୁ ପାଟକନାରେ କେତେ ପରସ୍ତ ଗୁଡ଼ାଇ ଗୋଟିଏ ଝୁଲାମୁଣିରେ ଧରି ବାହାରିଲେ।

ଯଦୁମଣି ରଣପୁର ଗଡ଼ରେ ପହଞ୍ଚି ରାଜାଙ୍କୁ ଦେଖାକରିବାକୁ ଉଆସକୁ ଗଲେ। ରାଜା ଯଦୁମଣିଙ୍କୁ ଦେଖି ଖୁସି ହେଲେ।

ତାଙ୍କୁ ଆସନ ଦେଇ ପାଖରେ ବସାଇଲେ। ଏହି ସମୟରେ ଯଦୁମଣି ତାଙ୍କ ଝୁଲାମୁଣିରୁ ପାଟକନାରେ ବନ୍ଧା ଶାଳଗ୍ରାମଟିକୁ କାଢ଼ି ରାଜାଙ୍କ ହାତକୁ ବଢ଼ାଇଦେଲେ।

ରାଜା ଭାବିଲେ – ଯଦୁମଣି କିଛି ଦାମିକା ଉପହାର ପାଟକନାରେ ବାନ୍ଧି ଆଣିଛନ୍ତି। ତେଣୁ ସେ ଖୁସି ମନରେ ପାଟ କନାଟି ଖୋଲିଲେ। ପରସ୍ତ ପରସ୍ତ କରି କନା ଫିଟାଇ ସାରି ଦେଖିଲେ ଗୋଟିଏ ଶାଳଗ୍ରାମ ପଥର। ତାହା ଦେଖି ସେ କନା ସହିତ ଶାଳଗ୍ରାମଟିକୁ ଅନାଦରରେ ତଳେ ଥୋଇଦେଲେ।



ଯଦୁମଣି ରାଜାଙ୍କ ମନକଥା ଜାଣିପାରିଲେ। ରାଜାଙ୍କ ଆଚରଣ ତାଙ୍କୁ ଭଲଲାଗିଲା ନାହିଁ। ସେ ଗୋଟିଏ ଗୀତ ଶୁଣେଇଲେ –

ଅନ୍ଧ ଦେଶକୁ ଗଲି ଦର୍ପଣ ବିକି
କନ୍ଧ ହାତରେ ଦେଲି ଗୋଦାନ ଟେକି,
ଜଡ଼ା ମଧୁରେ ଖଡ଼ା କଲି ରନ୍ଧନ
କାମୁଡ଼ା ଘୋଡ଼ା ମୁଖେ ଦେଲି ଚୁମ୍ବନ,
ହେ ରାଜା କି କଲ,
ବିଷ୍ଣୁ ପ୍ରତିମାକୁ ତଳେ ଥୋଇଲ।

ଯଦୁମଣି ଗୀତରେ କହିଲେ – ଅନ୍ଧ ଦର୍ପଣର ଗୁଣ ଜାଣେ ନାହିଁ। ଗୋରୁ ଦାନକଲେ କେତେ ପୁଣ୍ୟ ହୁଏ ସେ କଥା କନ୍ଧ ଜାଣେନାହିଁ। ଜଡ଼ାତେଲ ଆଉ ମହୁରେ ରାନ୍ଧିଲେ ଖଡ଼ା ଖାଇ ହୁଏନାହିଁ। କାମୁଡ଼ା ଘୋଡ଼ାକୁ ଆଦର କଲେ ସେ କାମୁଡ଼ି ଥାଏ। ଯାହାର ଗୁଣ ନାହିଁ ସେ ଅନ୍ୟର ଗୁଣ ବୁଝିପାରେ ନାହିଁ। ରାଜାଙ୍କର ଗୁଣ ନଥିବାରୁ ସେ ଶାଳଗ୍ରାମର ଗୁଣ ଜାଣି ନପାରି ତାହାକୁ ହେୟ ମନେକଲେ।

ରାଜା ତାଙ୍କର ଭୁଲ ବୁଝିପାରିଲେ। ଶାଳଗ୍ରାମଙ୍କୁ ନେଇ ମୁଣ୍ଡରେ ଲଗାଇଲେ। ଖଟୁଲିରେ ରଖି ପୂଜାକଲେ। ଯଦୁମଣିଙ୍କ ବୁଦ୍ଧିକୁ ଧନ୍ୟ ଧନ୍ୟ କଲେ।

## କିଏ ବଡ଼ କିଏ ସାନ ?

ଯଦୁମଣି ଓଡ଼ିଶାର ସବୁ ରାଜାଙ୍କ ପାଖକୁ ଯାଆନ୍ତି; ହେଲେ ତାଙ୍କର ସବୁଠାରୁ ପ୍ରିୟ ଥାନ ନୟାଗଡ଼। ନୟାଗଡ଼ ରାଜା ମଧ ଯଦୁମଣିଙ୍କୁ ଦଣ୍ଡେ ଛାଡ଼ନ୍ତି ନାହିଁ। ରାଜା ଯେଉଁଆଡ଼େ ଯାଆନ୍ତି ଯଦୁମଣିଙ୍କୁ ସାଥିରେ ନିଅନ୍ତି।

ଥରେ ନୟାଗଡ଼ ରାଜା! ତାଙ୍କ ରାଇଜ ବୁଲି ବାହାରିଲେ। ସାଥିରେ ଅଛନ୍ତି ଯଦୁମଣି। ରାଜା ପାଲିଙ୍କିରେ ବସିଥାନ୍ତି।

ଯଦୁମଣି ପାଖେ ପାଖେ ପଛରେ ଚାଲିଥାନ୍ତି । ସେମାନେ ଗୋଟିଏ ପାହାଡ଼ର ତଳେ ତଳେ ଯାଉଥାନ୍ତି । ଏତିକିବେଳେ ସେ ପାହାଡ଼ ଉପର ଦେଇ ଖଣ୍ଡପଡ଼ା ରାଜା ଯିବାର ଦେଖାଗଲା । ଖଣ୍ଡପଡ଼ା ରାଜା ହାତୀରେ ବସିଥାଆନ୍ତି । ସାଥିରେ ତାଙ୍କର ଲୋକବାକ ।



ଖଣ୍ଡପଡ଼ା ରାଜା ହାତୀରେ ବସି ପାହାଡ଼ ଉପରେ ଯାଉଥିବାରୁ ନିଜକୁ ବଡ଼ ମନେକଲେ । ପାହାଡ଼ ତଳେ ପାଲିଙ୍କିରେ ଯାଉଥିଲେ ନୟାଗଡ଼ର ରାଜା । ଏଇ କଥାରୁ ଖଣ୍ଡପଡ଼ା ରାଜା ନୟାଗଡ଼ ରାଜାଙ୍କୁ ପରିହାସ କରି ଦୁଇପଦ କହିଦେଲେ । ରାଜାଙ୍କ ଦେଖାଦେଖି ତାଙ୍କ ପାଖଲୋକେ ମଧ୍ୟ ପରିହାସ କଲେ ।

ଏକଥା ଯଦୁମଣିଙ୍କ ଦିହରେ ଗଲାନି । ସେ ସଙ୍ଗେ ସଙ୍ଗେ ମନରୁ ଫାନ୍ଦି ଦୁଇପଦ କବିତା ବୋଲିଦେଲେ । ବାସ୍ ସେତିକିରେ

ଖଣ୍ଡପଡ଼ା ରାଜା ଲାଜରେ ଚୁପ୍ ହୋଇଗଲେ। ଯଦୁମଣି ଗାଉଥିଲେ –

ନିକିତି ତଉଲ ସାନ ବଡ଼କୁ
ଭାରି ହୁଏ ଯେହୁ ରହେ ତଳକୁ।

ଗୀତ ପଦକର ମରମ ହେଲା– ହଇହୋ, ଉପରେ ରହିଚ୍ ବୋଲି ନିଜକୁ ବଡ଼ ମଣୁଚ କ'ଣ? ନିକିତି ଦେଖିଚ ତ? ଭାରୀ ପାଖଟି କେଉଁଠି ରହେ? ତଳକୁ ନା ନାହିଁ? ନୟାଗଡ଼ ରାଜା ଗୁଣରେ ଭାରୀ, ସେ ତଳକୁ ଅଛନ୍ତି। ଖଣ୍ଡପଡ଼ା ରାଜାଙ୍କର କିଛି ଗୁଣ ନାହିଁ– ହାଲୁକା ଲୋକ– ଉପରେ ଅଛନ୍ତି।

## ଯଦୁମଣିଙ୍କ ମୁଆଁଖିଆ

ରାଜା ନିଜ ଦେଶରେ କେବଳ ପୂଜା ପାଆନ୍ତି। ପାଠୁଆ ଲୋକ ସବୁଠାରେ ପୂଜାପାଏ। ଯଦୁମଣିଙ୍କର ଆଦର ସବୁଠାରେ ଥିଲା। ଥରେ ଯଦୁମଣିଙ୍କର ମନ ହେଲା ପୁରୀଧାମ ଯିବାକୁ। ଯାଇ ଜଗନ୍ନାଥଙ୍କୁ ଦର୍ଶନ କରିବେ। ଯଦୁମଣି ପୁରୀରେ ପହଞ୍ଚିଲେ। ଜଗନ୍ନାଥଙ୍କୁ ଦର୍ଶନ କଲେ। ମହାପ୍ରସାଦ ସେବା କଲେ। ତାପରେ ଗଜପତି ରାଜାଙ୍କୁ ଭେଟିବାକୁ ନଅରକୁ ଗଲେ।

ପୁରୀର ରାଜା ଯଦୁମଣିଙ୍କୁ ଦେଖି ବଡ଼ ଖୁସି ହେଲେ। ଯଦୁମଣି କବି ଓ ପଣ୍ଡିତ ବୋଲି ସେ ଆଗରୁ ଜାଣିଥିଲେ। ଯଦୁମଣି ପୁରୀ ରାଜାଙ୍କର ଆଦର ପାଇଲେ। ରାଜାଙ୍କ ସଭାରେ ବସିଲେ। ପଣ୍ଡିତମାନଙ୍କ ସହିତ ନାନା ପାଠ ଆଲୋଚନା କଲେ। ଗୀତ ରଚନା କରି ରାଜାଙ୍କୁ ଶୁଣେଇଲେ। ଏମିତି ଭାବରେ ତାଙ୍କର ଦିନ କଟିଲା।

ଧନୁମାସ ଆସିଲା। ଧନୁ୍ ମାସରେ ଧନୁମୁଆଁ ଖିଆହୁଏ। ଦିଅଁଙ୍କ ପାଖରେ ଧନୁମୁଆଁ ଭୋଗ ହୁଏ। ପିଲାଠାରୁ ବୁଢ଼ାଯାଏଁ ସଭିଏଁ ମୁଆଁ ଖାଇବାକୁ ମନକରନ୍ତି। ଯଦୁମଣି ସାଥିରେ ଜଣେ ସେବକ ନେଇଥାନ୍ତି। ସେ ଯଦୁମଣିଙ୍କୁ କହିଲା– ସାଆନ୍ତେ, ଧନୁମାସ ତ ହେଲା। ଏ ସାଲ କ'ଣ ମୁଆଁ ଖାଇବାକୁ ମିଳିବ ନାହିଁ କି ?

ଯଦୁମଣିଙ୍କର ମନେପଡ଼ିଗଲା ମୁଆଁ କଥା। ତାଙ୍କର ବି ମୁଆଁ ଖାଇବାକୁ ମନହେଲା। ସେ କହିଲେ– "ହଉ, ଆଜି ଖାଇବା।" ଯଦୁମଣି ସବୁଦିନ ପରି ସେଦିନ ବି ନଅରକୁ



ଗଲେ। ମଉଜିଆ କଥାଗୁଡ଼ିଏ କହି ରାଜାଙ୍କୁ ଖୁସି କରିଦେଲେ। ରାଜା ଖୁସି ହୋଇ ପଚାରିଲେ– ଯଦୁମଣି, ତୁମର କ'ଣ ଦରକାର ? ଯଦୁମଣି ସାଙ୍ଗେ ସାଙ୍ଗେ ଗୀତ ପଦେ ଗାଇଲେ–

ଧନୁମାସ ହେଲା ହନୁ ନ ଚଳିଲା
କହିବାକୁ ବଡ଼ ଲାଜ
ମୁଆଁ ଖାଇବାକୁ ମୁଁ ଆଁ କରିଅଛି
ଦେବା ହେଉ ମହାରାଜ।

ଗୀତର ମରମ ହେଲା – ମୁଆଁ ଖାଇବା ଧନୁମାସ ହେଲା; ହେଲେ ମୁଆଁ କେଉଁଠୁ ମିଳିଲା ନାହିଁ। ଏକଥା କହିବାକୁ ଲାଜ ଲାଗୁଚି। ମୁଆଁ ଖାଇବାକୁ ମୋର ବଡ଼ ମନ ହେଉଚି। ରାଜା କିଛି ମୁଆଁ ଦିଅନ୍ତୁ।

ରାଜା ଗୀତଟି ଶୁଣି ହସିପକାଇଲେ। ନଅରର ସେବକ ହାତରେ ଗୁଡ଼ିଏ ମୁଆଁ ପଠାଇଦେଲେ। ସେଦିନ ଯଦୁମଣିଙ୍କ ବସାଘରେ ମୁଆଁଖିଆ ବଡ଼ ଧୁମ୍‌ଧାମ୍‌ରେ ଚାଲିଲା।

# ମହିମାମେରୁ ଠାକୁରଙ୍କ ମହିମା

ଖଣ୍ଡପଡ଼ା ରାଇଜରେ ମହିମାମେରୁ ଠାକୁର ପୂଜାପା'ନ୍ତି। ଲୋକେ ତାଙ୍କୁ ବହୁତ ମାନନ୍ତି। ଏଇ ମେରୁ ଠାକୁରଙ୍କ ଭୋଗ ହେଲା ମୁଆଁ। ମେରୁ ସଂକରାନ୍ତିଦିନ ଯଦୁମଣି ଖଣ୍ଡପଡ଼ାରେ ଥା'ନ୍ତି। ସେ ଖଣ୍ଡପଡ଼ା ରାଜାଙ୍କ ସହିତ ମହିମାମେରୁଙ୍କ ଦର୍ଶନରେ ଗଲେ। ପୂଜା ପରବ ଚାଲିଥାଏ। ବହୁତ ଲୋକ ଜମା ହୋଇଥାନ୍ତି। ପୂଜା ଭୋଗରାଗ ସରିଲା। ପ୍ରସାଦ ପାଇବା ପରେ ରାଜା ମହିମାମେରୁଙ୍କ ମହିମା କଥା ଯଦୁମଣିଙ୍କୁ କହିଲେ। କଥା ଶେଷରେ ରାଜା ଯଦୁମଣିଙ୍କୁ ପଚାରିଲେ – ଯଦୁମଣି, ଏମିତି ଠାକୁର ଆଉ କେଉଁଠି ଦେଖିଛ ?

ଯଦୁମଣି ଠାକୁରଙ୍କ ମହିମା ଜାଣନ୍ତି; ହେଲେ ଗୋଟିଏ କଥା ତାଙ୍କୁ ଭଲ ଲାଗିଲା ନାହିଁ। ସେ ଦେଖିଲେ ଯେ

ପଣ୍ଡା ପୂଜାରୀ ବିଅଁଙ୍କୁ ଭୋଗ ଦେବାରେ ଠକୁଚନ୍ତି। ଭୋଗ ଠିକ୍ କରୁନାହାନ୍ତି। ଏକଥା କେହି ସାହସରେ ରାଜାଙ୍କୁ କହିପାରନ୍ତି ନାହିଁ। ଯଦୁମଣି ବଡ଼ ଚତୁରତା ସହିତ କଥାଟି ରାଜାଙ୍କ ଆଗରେ କହିଦେଲେ।

ଯଦୁମଣି କହିଲେ– ମଣିମା, ମେରୁ ଠାକୁରଙ୍କ ମହିମା ମୁଁ କ'ଣ କହିବି? ଖଣ୍ଡମଣ୍ଡଳରେ ଏଭଳି ଠାକୁର ଆଉ କେଉଁଠି ନାହାନ୍ତି। ଯେତେ ଯେଉଁଠି ମୁଆଁ ଭୋଗ ହୁଏ ସବୁଠି ଲିଆରେ ଗୁଡ଼ ଲାଗିଲେ ମୁଆଁ ହୁଏ; ହେଲେ ମେରୁ ଠାକୁରଙ୍କ ମହିମାରୁ ଏଠାରେ ଲିଆରେ ଗୁଡ଼ ଲାଗିବା ଦରକାର ପଡୁନି। ଲିଆରେ ଲିଆ ଲାଗି ମୁଆଁ ହେଇଯାଉଚି।

ରାଜା କଥାର ମରମ ବୁଝିଲେ। ପଣ୍ଡା ପୂଜାରୀଙ୍କୁ ସାବଧାନ କରିଦେଲେ। ଠାକୁରଙ୍କ ନୀତିରେ ଠକାମି ନକରିବାକୁ ହୁକୁମ ଦେଲେ।

## ଠାକୁର ପୂଜା

ଯଦୁମଣି ଦିନେ ନଅରରେ ପହଞ୍ଚି ଦେଖିଲେ ରାଜା ପୂଜାରେ ବସିଛନ୍ତି। ତାଙ୍କ ଆଗରେ ଫୁଲ ଚନ୍ଦନରେ ସଜାହୋଇ ଥୁଆହୋଇଚନ୍ତି ପିତଳରେ ତିଆରି ଏକ ଠାକୁର ପ୍ରତିମା। ଏହା ଦେଖି ଯଦୁମଣି ଟିକିଏ ଆଚମ୍ବିତହେଲେ। ସେ ଆଗରୁ ଦେଖିଥିଲେ ରାଜା ମାଟିରେ ତିଆରି ଠାକୁର ମୂର୍ତ୍ତି ପୂଜା କରୁଥିଲେ। ତାପରେ କଳା ମୁଗୁନି ପଥରରେ ତିଆରି ଠାକୁର ପୂଜା କଲେ। ଆଜିର ଠାକୁର ପିତଳ ଧାତୁରେ ତିଆରି।

ଯଦୁମଣି ଟିକିଏ ହସିଦେଇ ଗୀତଟିଏ ଗାଇଲେ–

କେଉଁଠାରେ ଖଡ଼ୁ, କେଉଁଠାରେ ଗଡ଼ୁ
କେଉଁଠାରେ ପୁଣି ମୁଦି
କେଉଁଠାରେ ପୁଣି ତୁମେ ବୋଲାଉଛ
ପ୍ରଭୁ କରୁଣା ବାରିଧି।

ରାଜା ଏ ଗୀତର ମରମ ଯଦୁମଣିଙ୍କୁ ପଚାରିଲେ। ଯଦୁମଣି କହିଲେ— ମଣିମା, ଏ ଠାକୁର ପ୍ରତିମା ପିତଳରେ ତିଆରି। ଏଇ ପିତଳରେ ଖଡ଼ୁ, ମୁଦି ଆଦି ଅଳଙ୍କାର ତିଆରି ହୁଏ। ଗଡ଼ ମଧ ତିଆରି ହୁଏ। ପ୍ରଭୁଙ୍କ ମହିମା କିଏ କଳନା କରିବ ? ତାଙ୍କ ପ୍ରତିମା ମାଟି ପଥରରେ ହୋଇଥାଏ। ତଥା ପିତଳରେ ବି ହୁଏ। ସେ ଯେଉଁ ରୂପରେ ଥାନ୍ତୁ— ସେ ଠାକୁର। ଆମେ ତାଙ୍କର ପୂଜା କରୁ।

ରାଜା ଯଦୁମଣିଙ୍କ କଥା ଶୁଣି ଖୁସିହେଲେ।

## ପଣ୍ଡିତଙ୍କ ବୁଦ୍ଧି ପରୀକ୍ଷା

ଥରେ ଜଣେ ବଡ଼ ପଣ୍ଡିତ ନୟାଗଡ଼ ରାଇଜକୁ ଆସିଲେ। ପଣ୍ଡିତଙ୍କୁ ରାଜସଭାକୁ ଡକାଗଲା। ପଣ୍ଡିତେ ରଜାଙ୍କ ଆଗରେ କେତେକ ଶାସ୍ତ୍ର ପୁରାଣ କଥା କହିଲେ। ତାଙ୍କ କଥାରୁ ଜଣାଗଲା ସେ ଜଣେ ବଡ଼ ପଣ୍ଡିତ। ସେ ନୟାଗଡ଼ର ପଣ୍ଡିତମାନଙ୍କୁ କେତେ କେତେ ପ୍ରଶ୍ନ ପଚାରିଲେ। ଯଦୁମଣି ତ ସଭା ପଣ୍ଡିତ ଥିଲେ— ସେ ସବୁ ପ୍ରଶ୍ନର ଠିକ୍ ଠିକ୍ ଉତ୍ତର ବତାଇଦେଲେ।

ରାଜା ମନକଲେ ଏ ନୂଆ ପଣ୍ଡିତଙ୍କ ପଣ୍ଡିତପଣିଆ ପରୀକ୍ଷା କରିବେ। ସେ ଯଦୁମଣିଙ୍କୁ ପ୍ରଶ୍ନ ପଚାରିବାକୁ କହିଲେ।

ଯଦୁମଣି କହିଲେ— ମଣିମା, ମୁଁ ଚାରିଟି ପ୍ରଶ୍ନ ପଚାରିବି।

ଚାରିଟିଯାକ ପ୍ରଶ୍ନର ଉତ୍ତର ଗୋଟିଏ ନାମରେ ଦେବାକୁ ହେବ।

ଆସିଥିବା ପଣ୍ଡିତେ ଏ କଥାରେ ହଁ ଭରିଲେ।



ରାଜାଙ୍କଠାରୁ ଅନୁମତି ନେଇ ଯଦୁମଣି ପଚାରିଲେ –

ଛବିରେ କେ ଜିଣେ ନବରବିକି ?
କିଏ ପେଟ ପୋଷେ ଧନୁଶର ବିକି ?
ଜଳଠାରେ ଭୟ କାହାର ନିତି ?
ସାପକୁ ନ ଥାଏ କାହାର ଭୀତି ?

ପଣ୍ଡିତେ ଏ ପ୍ରଶ୍ନର ଉତ୍ତର ଦେବାପାଇଁ ଅନେକ ବିଚାର କଲେ। ସକାଳ ଯାଇ ସଞ୍ଜ ହେଲା। ଚାରିଟି ପ୍ରଶ୍ନ – ଉତ୍ତର ଗୋଟିଏ ପଦ ହେବ। ପଣ୍ଡିତେ ଉତ୍ତର ଖୋଜି ପାଇଲେ ନାହିଁ। ହାର ମାନିଲେ। ଲାଜରେ ଚୁପ୍ ରହିଲେ।

ଯଦୁମଣି ନିଜ ପ୍ରଶ୍ନର ଉତ୍ତର ଦେଇ କହିଲେ – ଅବିର । 'ଅବିର' ବା ଫଗୁର ରଙ୍ଗ 'ନବରବି' ବା ଉଇଁ ଆସୁଥିବା ସୂର୍ଯ୍ୟର ରଙ୍ଗକୁ ବଳିପଡ଼େ । 'ଅବିର' ବା ଯେ ବୀର ନୁହେଁ ସେ ଧନୁଶର ବିକି ପେଟ ପୋଷେ । 'ଅବିର' ବା ଛେଳି ପାଣିକୁ ଡରେ । 'ଅବିର' ବା ଗରୁଡ଼ ସାପକୁ ଭୟ କରେନାହିଁ । ଏହା ଶୁଣି ସଭିଏଁ ଯଦୁମଣିଙ୍କ ପଣ୍ଡିତପଣିଆର ପ୍ରଶଂସା କଲେ ।

# ଗୁରୁଙ୍କୁ ହେଳା, ଚାଟ ଆଗରେ ମଶାଲଜଳା

ଜଣେ ବଡ଼ କବି ରୂପେ ଯଦୁମଣି ଓ ଓଡ଼ିଶାରେ ନାଁ କରିଥିଲେ । ତାଙ୍କର ଗୀତଗୁଡ଼ିକ ଗାଁଗଣ୍ଡାରେ ଲୋକଙ୍କ ତୁଣ୍ଡରୁ ଶୁଣା ଯାଉଥିଲା । ଯଦୁମଣି ଗୋଟିଏ ଜାଗାରେ ଥିର ହୋଇ ରହି ପାରନ୍ତି ନାହିଁ । ନାନାଆଡ଼େ ବୁଲିଲେ ତାଙ୍କୁ ଭଲଲାଗେ ।

ଯଦୁମଣି ଥରେ ଆଠଗଡ଼କୁ ବୁଲିଯାଇଥିଲେ । ଆଠଗଡ଼ର ରାଜା ଯଦୁମଣିଙ୍କୁ ବସାଘର ଦେଇ ରଖାଇଲେ । ସବୁଦିନ ପରି ସେଦିନ ରାତିରେ ମଧ ନଅରରେ ଆଖଡ଼ା ହେଲା । ଆଖଡ଼ାରେ ଜଣେ ଗୁରୁ ଥାଆନ୍ତି । ସେ ପୁରାଣ କଥାକୁ ନାଟକରେ ଲେଖି ଅଭିନୟ କରାନ୍ତି । ତା ସଙ୍ଗେ ଗୀତ ଯୋଡ଼ି ବାଜା ଆଦି ବଜାଇ ନାଟକକୁ ସରସ କରନ୍ତି । ରାତିରେ ନାଟକ ହୁଏ । ଆଜିକାଲିର ଗ୍ୟାସଲାଇଟ ସେତେବେଳେ ତ ଚଳି ନଥିଲା । ତେଣୁ ହୁଳା ବା ମଶାଲ ଜାଳି ନାଟଜାଗାକୁ ଆଲୁଅ କରାଯାଏ ।

ଆଠଗଡ଼ରେ ଆଖଡ଼ା ଗୁରୁ ଥାଆନ୍ତି ବିଶି ପ୍ରହରାଜ । ରାଇଜସାରା ତାଙ୍କୁ ଆଖଡ଼ା ଗୁରୁ ବୋଲି ମାନନ୍ତି, ଖାତିର କରନ୍ତି । ସେଦିନ ଆଖଡ଼ା ସରୁ ସରୁ ରାତି ଅଧ ହେଲା ।

ତା'ପରେ ବିଶି ପ୍ରହରାଙ୍କେ ଘରକୁ ଫେରିଲେ।

ଯଦୁମଣି ଦେଖିଲେ ଦୁହୁଡ଼ି ଧରିଥିବା ଲୋକ ନାଟୁଆପିଲାଙ୍କ ଆଗେ ଆଗେ ବାଟ ଦେଖେଇ ଯାଉଚି। ଇଆଡ଼େ ଗୁରୁ ବିଶି ପ୍ରହରାଙ୍କେ ଅନ୍ଧାରରେ ବାଟ ଅଣ୍ଡାଳି ଅଣ୍ଡାଳି ଘରକୁ ଯାଉଚନ୍ତି।

ଜଣେ ଗୁରୁଙ୍କ ପ୍ରତି ଏ ଅବହେଳା ଦେଖି ଯଦୁମଣିଙ୍କ ମନରେ ବଡ଼ ଦୁଃଖ ହେଲା। ଗୁରୁଙ୍କ ଅପମାନ ସେ ସହିପାରିଲେ ନାହିଁ। ପରିହାସ କରି ଗୀତ ପଦେ ଗାଇଲେ –

ଧନ୍ୟ ଆଠଗଡ଼ ଲୀଳା
ବିଶି ପ୍ରହରାଙ୍କେ ଅନ୍ଧାରେ ଆସନ୍ତି
ଚାଟଙ୍କ ଆଗରେ ହୁଳା।

ଏବେ ମଧ୍ୟ ଏ ଗୀତ ପଦକ ଲୋକମାନେ ମନେରଖିଛନ୍ତି। କେଉଁଠି ଗୁରୁଜନଙ୍କୁ ଅପମାନ ହେଲେ ବୋଲିଦେଉଛନ୍ତି।

## ଠକାମି ଧରାପଡ଼ିଲା

ଯଦୁମଣି ଥରେ ନୟାଗଡ଼ ପାଖର ଏକ ଗାଁକୁ ବୁଲିଗଲେ। ସେ ଗାଁ ମୁଣ୍ଡରେ ପହଞ୍ଚି ଦେଖିଲେ ସୁନ୍ଦର ମଣ୍ଡପଟିଏ ଯା ଭିତରେ ତିଆରିହେଇଚି। କେତେ କୁଟିକମ ହୋଇ ମଣ୍ଡପଟି ବେଶ୍ ମନଲୋଭା ହେଇଚି। ଯଦୁମଣି ସେ ସୁନ୍ଦର ମଣ୍ଡପଟି ଦେଖି ଟିକିଏ ସମୟ ସେଠାରେ ବସିଗଲେ।

ଏଇ ସମୟରେ ଗାଁର କେତେଜଣ ମୁଖିଆ ଲୋକ ସେଠାକୁ ଆସିଲେ। କବି ଯଦୁମଣିଙ୍କୁ ମଣ୍ଡପରେ ବସିଥିବା ଦେଖି ସେମାନେ ଖୁସିହେଲେ। କବି ଯଦୁମଣିଙ୍କୁ ଜୁହାର ହୋଇ ତାଙ୍କ ପାଖରେ

ଠିଆହେଲେ। ଯଦୁମଣି ସୁନ୍ଦର ମଣ୍ଡପଟିର ପ୍ରଶଂସା କଲେ। ଯେଉଁ ଲୋକ ଏ ମଣ୍ଡପଟି କରାଇଛନ୍ତି ତାଙ୍କର ପ୍ରଶଂସା କରି ତାଙ୍କର ନାମ ପଚାରିଲେ।

ଜଣେ ବୁଢ଼ା କହିଲେ– ଏଇଟି ଆଜ୍ଞା ଆମ ଗାଁ ମୁରାସାଉଙ୍କର ଧରମ କାମ।

ମୁରା ସାଉର ନାମ ଶୁଣି ଯଦୁମଣି ଟିକିଏ ଚମକିପଡ଼ିଲେ। ତାଙ୍କୁ ଡକାଇବାକୁ କହିଲେ। ଜଣେ ଲୋକ ଯାଇ ମୁରାସାଉକୁ କହିଲା– ତୁମ ତିଆରି ମଣ୍ଡପରେ ବସି କବି ଯଦୁମଣି ତୁମକୁ ଡାକୁଚ଼ନ୍ତି, ଆସ।



ମୁରାସାଉ ଏହା ଶୁଣି ଅତି ଖୁସି ମନରେ ମଣ୍ଡପକୁ ଆସିଲା। ଯଦୁମଣି ତାକୁ ଦେଖି ଦୋଦୋଚିହ୍ନା ହେଲେ। ତେବେ ସେକଥା ମନରେ ରଖି ପଚାରିଲେ– ତୁମେ ଏ ମଣ୍ଡପଟି କରେଇଚ? ମୁରାସାଉ 'ହଁ' କଲା।

ଯଦୁମଣିଙ୍କର ମନେପଡ଼ିଲା କେତେ ଦିନ ତଳର କଥା। ଏଇ ଲୋକ ରାଜାଙ୍କ ପାଖକୁ ଆସିଥିଲା। ଗାଁମୁଣ୍ଡରେ ମଣ୍ଡପଟିଏ କରାଇ ଦେବାକୁ ରାଜାଙ୍କୁ ଗୁହାରି କଲା। ରାଜା ଦୟା କରି କେତେ ଟଙ୍କା ଦେଲେ। ଯଦୁମଣି ସେଠାରେ ଏକଥା କିଛି ନକହି ଘରକୁ ଫେରିଲେ।

ତା ପରଦିନ ଯଦୁମଣି ନଅରକୁ ଯାଇ ପଚାରି ଜାଣିଲେ ଯେ ରାଜା ମୁରାସାଉକୁ ମଣ୍ଡପ ତିଆରି ଲାଗି ଟଙ୍କା ଦେଇଛନ୍ତି। ରାଜାଙ୍କ ବେଠିଆମାନେ ମଣ୍ଡପ ତିଆରିରେ ଖଟିଚନ୍ତି। ଅଥଚ ଏ ଠକ ମୁରାସାଉ ଲୋକଙ୍କୁ କହୁଛି ଯେ ମଣ୍ଡପ ତା ନିଜ ଟଙ୍କାରେ କରାଇଚି।

ଯଦୁମଣି ଭାବିଲେ – ଏଭଳି ମିଛୁଆ ଠକକୁ ଶିକ୍ଷା ମିଳିବା ଉଚିତ। ଏକଥା ରାଜା ନଜାଣିଲେ ଏମିତି ଠକମାନଙ୍କର ସାହସ ବଢ଼ିଯିବ। ରାଜାଙ୍କ ପଇସାରେ କାମ ହେବ – ହେଲେ ଲୋକେ ସେକଥା ଜାଣିବେନି। ଏହା ବିଚାରି ଯଦୁମଣି ଘଟଣାଟି ରାଜାଙ୍କୁ ଜଣାଇବାକୁ ଠିକ୍ କଲେ।

ତହିଁ ପରଦିନ ବେଳ ଦେଖି କବିତା ଛଳରେ ଯଦୁମଣି ରାଜାଙ୍କୁ କହିଲେ –

‘ସରିଲା ରଜାଙ୍କ ଗଣ୍ଠି
ପରଜାଏ କଲେ ବେଠି,
ଏମନ୍ତ ମଣ୍ଡପ ପ୍ରତିଷ୍ଠା ଚାଉଳ
ସାଉ ମୁଣ୍ଡେ ହେଲା ବୃଷ୍ଟି।’

ରାଜା ଯଦୁମଣିଙ୍କ କଥା କିଛି ବୁଝି ପାରିଲେ ନାହିଁ। ଘଟଣା କ’ଣ ଜଣାଇବାକୁ କହିଲେ।

ଯଦୁମଣି ମୁରାସାଉର ମଣ୍ଡପ ତିଆରି କଥା କହିଲେ। ରାଜାଙ୍କ ଟଙ୍କା ଓ ପ୍ରଜାଙ୍କ ବେଠିରେ ତିଆରି ହେଲା ମଣ୍ଡପ।

ମୂରାସାଉ ମିଛରେ ନିଜେ କରାଇଛି କହି ବାହାଦୁରି ନେଉଛି ବୋଲି ଯଦୁମଣି ଜଣାଇଲେ। ଏପରି ମିଛୁଆ ଠକଙ୍କୁ ଦଣ୍ଡ ନ ମିଳିଲେ ସେମିତି ଲୋକଙ୍କର ସାହସ ବଢ଼ିଯିବ ବୋଲି କହିଲେ।

ରାଜା ଏହା ଶୁଣି ମୂରାସାଉକୁ ଡକାଇଲେ। ଯଦୁମଣି କହିଥିବା କଥା ସତ କି ବୋଲି ପଚାରିଲେ। ମୂରାସାଉ ନିଜର ଦୋଷ ମାନିଲା।

ଏ ଠକକୁ କି ଦଣ୍ଡ ଦିଆଯିବ– ରାଜା ଯଦୁମଣିଙ୍କୁ ପଚାରିଲେ।

ଯଦୁମଣି କହିଲେ– ମହାରାଜ, ଏ ଲୋକକୁ ଏଇ ଥରକ କ୍ଷମା ଦିଅନ୍ତୁ। ଆଉ ଏପରି କଲେ କଠିନ ଦଣ୍ଡ ଦେବେ। ମୂରାସାଉ ଛାଡ଼ପାଇଲା। ଲାଜରେ ଗାଁକୁ ଫେରିଲା। ତା' ଗାଁର ଓ ପାଖ ଗାଁର ଲୋକମାନେ ମଣ୍ଡପ ତିଆରିର ସତ କଥାଟି ଜାଣିଲେ।

ମିଛୁଆ ସାଉକୁ ସଭିଏଁ ଛି ଛି କଲେ। ମୂରାସାଉ ନିଜର ଦୋଷ ମାନି ଚୁପ୍ ରହିଲା। ବାହାଦୁରି ନେବାକୁ ମିଛ କହିଲେ ଏମିତି ଲାଜ ଅପମାନ ମିଳେ।

## ଉତ୍କଳ-ଘଣ୍ଟ

ଥରେ ଯଦୁମଣି କେତେକ ତୀର୍ଥ ସ୍ଥାନ ଦେଖିଯିବାକୁ ମନ କଲେ। ସେ ନୟାଗଡ଼ ରାଜାଙ୍କୁ ମନକଥା ଜଣାଇଲେ। ଯିବା ପାଇଁ ତାଙ୍କର ଅନୁମତି ମାଗିଲେ। ରାଜା ଅନୁମତି ଦେଲେ। ବାଟରେ ଖର୍ଚ୍ଚ କରିବାକୁ କିଛି ଟଙ୍କା ଦେଲେ।

ଯଦୁମଣିଙ୍କର ସେବା କରିବାକୁ ଗୋବିନ୍ଦ ନାମରେ ଜଣେ ଲୋକକୁ ମଧ୍ୟ ତାଙ୍କ ସାଥିରେ ପଠାଇଲେ।

ସେତେବେଳେ ତ ଗାଡ଼ି ମଟର ଆଦି ନ ଥାଏ। ଯଦୁମଣି ପାଦରେ ଚାଲି ଚାଲି ତୀର୍ଥ ଯାତ୍ରାରେ ବାହାରିଲେ। ସାଥିରେ ତାଙ୍କର ସେବକ ଗୋବିନ୍ଦ।

ଯାତ୍ରାରେ ବାହାରି କେତେ ତୀର୍ଥସ୍ଥାନ ଦେଖିଲେ। ସେ ଆସି ଭୁବନେଶ୍ୱରରେ ପହଞ୍ଚିଲେ। ଭୁବନେଶ୍ୱରରେ କେତେ ଦିନ ରହି ପବିତ୍ର ବିନ୍ଦୁସାଗରରେ ଗାଧୋଇଲେ। ଲିଙ୍ଗରାଜ, ଅନନ୍ତ ବାସୁଦେବ ଆଦି ଶିବମନ୍ଦିରମାନଙ୍କୁ ଯାଇ ଠାକୁର ଦର୍ଶନ କଲେ। ତା ପରେ ମାଆ ଶାରଳାଙ୍କ ଦର୍ଶନ ପାଇଁ ଝଙ୍କଡ଼କୁ ଗଲେ। ଯଦୁମଣି ଝଙ୍କଡ଼ରେ ପହଞ୍ଚି ଶାରଳା ଠାକୁରାଣୀଙ୍କର ପୂଜା କଲେ।

ଯଦୁମଣି ଜଣେ ବଡ଼ କବି ରୂପେ ସେତେବେଳକୁ ଚାରିଆଡ଼େ ନାମ କରିସାରିଥାନ୍ତି। ଯଦୁମଣି ଶାରଳାପୀଠକୁ ଆସିଛନ୍ତି ଜାଣି ଅନେକ ଲୋକ ତାଙ୍କୁ ଦେଖିବାକୁ ଆସିଲେ। କନକପୁରର ଜମିଦାର ଯଦୁମଣିଙ୍କୁ ଅତି ଆଦରରେ ଡାକି ନେଇ ନିଜ ଘରେ ରଖାଇଲେ।

ସେତେବେଳେ କନକପୁରରେ ଶିବ ମିଶ୍ର ନାମରେ ଜଣେ ପଣ୍ଡିତ ଥା'ନ୍ତି। ସେ ବି ଆସିଲେ ଯଦୁମଣିଙ୍କୁ ଦେଖିବାକୁ। ଯଦୁମଣିଙ୍କ ପଣ୍ଡିତପଣିଆ ପରଖିବାକୁ ଶିବ ମିଶ୍ର ରହସ୍ୟ କରି ପଚାରିଲେ – ଆପଣ କିଏ ?

ଶିବ ମିଶ୍ରଙ୍କ ସେ ମଉଜିଆ ପ୍ରଶ୍ନର ଉତ୍ତର ଯଦୁମଣି ଏକ ଗୀତରେ ଦେଲେ –

'ହୟଗ୍ରୀବ ମହାପ୍ରଭୁ ପ୍ରତାପେ
ଥୋଡ଼ା ନୁହେଁ ଲୋଡ଼ା କରନ୍ତି ନୃପେ,

ଭଲେ ଭଲ ଖଣ୍ଡେ ଖଣ୍ଡ ଯେ,
ନବଦୁର୍ବାଦଳ ଶ୍ୟାମଳ କୃପାରେ
ମୋ ନାମ ଉତ୍କଳ-ଘଣ୍ଟ ଯେ ।'



ଏହି ଗୀତଟିରେ ସେ ଜଣାଇଦେଲେ ଯେ— ହୟଗ୍ରୀବ ମହାପ୍ରଭୁ ବା ନାରାୟଣଙ୍କ ଦୟାରୁ ସେ ଜଣେ ବଡ଼ ପଣ୍ଡିତ ଓ କବି ହୋଇପାରିଚନ୍ତି । ସାଧାରଣ ଲୋକ— ଯେ ପଣ୍ଡିତ ଓ କବି ନୁହନ୍ତି— ସେ ତାଙ୍କର ମୂଲ୍ୟ ଜାଣିପାରିବେନାହିଁ । ପାଠ ଜାଣିଥିବା ପଣ୍ଡିତ ରାଜାମାନେ ତାଙ୍କୁ ଆଦର କରିଥାନ୍ତି । ସେ ଲେଖିଥିବା ଗୀତର ଆଦର ରାଜାଙ୍କ ପଣ୍ଡିତ ସଭାରେ ହୋଇଥାଏ ।

ଯଦୁମଣି ଗୀତରେ କହିଲେ— ତାଙ୍କର ଆଉ ଏକ ଗୁଣ ହେଉଛି— ଭଲଲୋକଙ୍କ ସହିତ ସେ ଭଲ ଆଚରଣ କରିଥାନ୍ତି । ସେହିପରି ଖଣ୍ଡମାନଙ୍କ ସାଙ୍ଗରେ ଖଣ୍ଡ ଭଳି ଆଚରଣ କରିଥାନ୍ତି ।

ସେହି ପ୍ରଭୁଙ୍କ ଦୟାରୁ ସେ ସବୁଆଡ଼େ ପରିଚିତ ହୋଇ 'ଉତ୍କଳ ଘଣ୍ଟ' ନାମ ପାଇଚ୍ଛନ୍ତି । ଶେଷରେ ଯଦୁମଣି ଗାଇଲେ –

''ନୟାଗଡ଼ ରାଜକବି ନାମ ଯଦୁମଣି
ଆଦର କରନ୍ତି ନୃପେ ମୋର ଗୁଣ ଜାଣି ।''

ଏହାର ଅର୍ଥ – ସେ ନୟାଗଡ଼ ରାଜାଙ୍କ ରାଜସଭାର କବି । ତାଙ୍କର ଗୁଣ ଜାଣି ନୟାଗଡ଼ ରାଜା ଓ ଅନ୍ୟ ରାଇଜର ରାଜାମାନେ ତାଙ୍କୁ ଆଦର କରନ୍ତି ।

ଯଦୁମଣିଙ୍କ ଗୀତ ଶୁଣି ସେଠାରେ ଥିବା ଲୋକମାନେ ଖୁସି ହେଲେ । ଯଦୁମଣି ଝଙ୍କଡ଼ରେ କିଛିଦିନ ରହି ପତିତପାବନ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ପୁରୀ ଗଲେ ।

□ □ □

# ମହାପୁରୁଷଙ୍କ ଜୀବନୀ

| | |
|---|---|
| ଶ୍ରୀକୃଷ୍ଣ | ମହାନ୍ ବିପ୍ଳବୀ ଚନ୍ଦ୍ରଶେଖର ଆଜାଦ |
| ଶ୍ରୀମଦ୍ ଶଙ୍କରାଚାର୍ଯ୍ୟ | ରାମମୋହନ ରାୟ |
| ଶ୍ରୀ ରାମକୃଷ୍ଣ ପରମହଂସ | ଶହୀଦ୍ ଭଗତ ସିଂହ |
| ସ୍ୱାମୀ ବିବେକାନନ୍ଦ | ଶହୀଦ କୁଅଁର ସିଂହ |
| ଶ୍ରୀ ଅରବିନ୍ଦ | ପଣ୍ଡିତ ଜବାହାରଲାଲ ନେହେରୁ |
| ପ୍ରବୁଦ୍ଧଗୁରୁ ମହିମାସ୍ୱାମୀ | ଶ୍ରୀମତୀ ଇନ୍ଦିରା ଗାନ୍ଧୀ |
| ଗୁରୁ ନାନକ | ନେତାଜୀ ସୁଭାଷଚନ୍ଦ୍ର |
| ଶ୍ରୀ ଚୈତନ୍ୟ | ଏମିତି ଥିଲେ ଆମ ବାପୁଜୀ |
| ଗୌତମ ବୁଦ୍ଧ | କୃଷ୍ଣ ଚରିତ |
| ମହାଯୋଗୀ ଗୋରଖନାଥ | ଆମ ମଧୁବାବୁ |
| ଶ୍ରୀ ରାମାନୁଜାଚାର୍ଯ୍ୟ | ଶ୍ରୀ ଜୟଦେବ |
| ସୁର ଦାସ | ଉପେନ୍ଦ୍ର ଭଞ୍ଜ |
| ସ୍ୱାମୀ ଶିବାନନ୍ଦ | ବିଶ୍ୱକବି ରବୀନ୍ଦ୍ରନାଥ |
| ସ୍ୱାମୀ ଦୟାନନ୍ଦ | ଉତ୍କଳ ଗୌରବ ମଧୁସୂଦନ |
| ପରମହଂସ ଯୋଗାନନ୍ଦ | ମହାମାନବ ଗୋପବନ୍ଧୁ |
| ସ୍ୱାମୀ ନିଗମାନନ୍ଦ | ଜ୍ୟୋତିର୍ବିଜ୍ଞାନୀ ପଠାଣୀ ସାମନ୍ତ |
| ମୀରାବାଈ | ନେତାଜୀ ସୁଭାଷ |
| ନରସିଂହ ମେହେଟ୍ଟା | ମହାମନା ମଦନମୋହନ ମାଲବ୍ୟ |
| ସନ୍ଥ ଜ୍ଞାନେଶ୍ୱର | ଫକୀରମୋହନ ଆତ୍ମଜୀବନ ଚରିତ |
| ସନ୍ଥ ଏକନାଥ | ଲାଲବାହାଦୁର ଶାସ୍ତ୍ରୀ |
| ସନ୍ଥ ତୁକାରାମ | ମହାକବି କାଳିଦାସ |
| ସନ୍ଥ କବୀର | ଦିଗ୍‌ଦର୍ଶକ |
| ରମଣ ମହର୍ଷି | ଇନ୍ଦୁରୁ ପ୍ରଧାନ ମନ୍ତ୍ରୀ |
| ସ୍ୱାମୀ ରାମତୀର୍ଥ | ଜୀବନ ପଥେ (ରମାଦେବୀ) |
| ସନ୍ଥ ରାମଦାସ | ବୁଦ୍ଧ ମହାଚରିତ |
| ସିରିଡ଼ି ସାଇବାବା | ମୋ ନିଜ କାହାଣୀ - ୧ମ, ୨ୟ |
| ମହାପୁରୁଷ ସ୍ୱାମୀ ଶିବାନନ୍ଦ | (ପଣ୍ଡିତ ଜବାହାରଲାଲ୍ ନେହେରୁ) |
| ଶ୍ରୀ ଅଭିରାମ ପରମହଂସ | ଉତ୍କଳମଣି ଗୋପବନ୍ଧୁ |
| ଭକ୍ତ କବି ଭୀମ ଭୋଇ | ଦେଶପ୍ରାଣ ମଧୁସୂଦନ |
| ମୋ ଜୀବନ କାହାଣୀ (ବାପୁଜୀ) | ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ |
| ଲୋକମାନ୍ୟ ବାଳଗଙ୍ଗାଧର ତିଳକ | ମୋର ସ୍ଥାନ (ପଣ୍ଡିତ ଗୋଦାବରୀଶ ମିଶ୍ର) |
| ଲାଲା ଲଜପତରାୟ | ଟଲଷ୍ଟୟ ଜୀବନୀ ଓ ଜୀବନଦର୍ଶନ |

ପ୍ରକାଶକ / ପ୍ରାପ୍ତିସ୍ଥାନ - ଗ୍ରନ୍ଥମନ୍ଦିର, କଟକ - ୨